# ଅଶ୍ରୁଧାର ।

ସୁରଙ୍ଗୀ ଅଧୀଶ୍ୱର

ଶ୍ରୀ ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନ ଜଗଦେବ

ବିରଚିତ ।

ପ୍ରଥମ ମୁଦ୍ରଣ ।

**Printed by V. Kar.**

THE UTKAL SAHITYA PRESS,

CUTTACK.

1917.

# ଅଶ୍ରୁଧାରା ।



ଗଲ କି ଆଗରୁ ସତି, ଅମରଭୁବନ,
ଗଢ଼ିବ ମୋପାଇଁ ନହିଁ ସ୍ୱତନ୍ତ୍ର ଆସନ ।

ମୋହେ ସମ ହତଭାଗ୍ୟ ସକାଶେ ସେ ସ୍ଥଳେ
ସ୍ଥାନ ନାହିଁ ବୋଲି ଜାଣି ଗଲ କି ଚପଳେ ।

କିପାଁ ଶୁଭ୍ର-ପ୍ରେମ-ନୀର ହୃଦୟ-କାସାରେ
ପୂର୍ଣ୍ଣ କରି ଶୁଖାଇ ତା ଦେଲ ଏକବାରେ ।

ଏ ଗୂଢ଼ ସମସ୍ୟା ତବ ତୁମ୍ଭଙ୍କୁ ଗୋଚର,
ବୁଝିବି କି ଅଭାଜନ ଏ ଛାର ପାମର ।

ପ୍ରେମ-ଧନ ଦେଇ ନେଲ କି ବଗୁର ଚତୁରେ,
ଗଲାବେଳେ ସେ କାରଣ ନ କହି କାହିଁଛେନ

ମନେ ଯଦି ଥିଲା ଛାଡ଼ି ଯିବାକୁ ଏସନ,
ଦୁଇ ଦିନ ପାଇଁ କିପାଁ ଭଙ୍ଗୁର ମିଳନ ।

ଏକାକୀ ରହିଲେ, ଦେବି, ତବ ପ୍ରେମ-ଋଣ
ପରିଶୋଧ କରିବାରେ ନ ହେବି ନିପୁଣ ।

ନୈରାଶ୍ୟର ହାହାମୟ ତପ୍ତ ଅଶ୍ରୁଧାରା
ଢାଳୁଥିବି ଯିନା ଅହା ଜୀବନଟା ସାରା ।

ଋଣୀ କରି ରଖିବାକୁ ମଣ ଯଦି ସୁଖ,
ରହ ଏକାକିନୀ, ପଛେ ହେଉ ମୋର ଦୁଃଖ ।

ସତ୍ୟ କରି କହୁଅଛୁ ନୁହ ତୁମ୍ଭେ ଋଣୀ,
ମୁହିଁ ଏକା ଋଣବଦ୍ଧ ଗୁଣବଦ୍ଧ ପୁଣି ।

ଦେଇଅଛି କେତେ ମୁହିଁ ତୁମ୍ଭ ମନେ କ୍ଲେଶ,
ତୁମ୍ଭ ବିନା କେହି ନାହିଁ ସହିବାକୁ ଲେଶ ।

କହୁଅଛ, ସତି, ଯେଉଁ ଭବିଷ୍ୟତ ବାଣୀ,
[illegible] ଭାବି ତାହା ମନ ହେଉଅଛି ହାଣି ।

ଭବାର୍ଣ୍ଣବେ ତବ ପୁଣ୍ୟ ପ୍ରଭାବୁଁ ନ ବୁଡ଼ି,
ଥିଲି ଆଶା ଆସିବାକୁ କୂଳକୁ ବାହୁଡ଼ି ।

ସେ ଆଶା ସମୂଳେ ଏବେ ହେଲା ତିରୋହିତ,
ସନ୍ତାପ-ଅନଳେ ଏବେ ହେଉଛନ୍ତି ଦହିତ ।

ଦେବି, ଦେବଲୋକୁ ଦିବ୍ୟ ଆଲୋକ ଦେଖାଇ
ନେଇଯାଅ ତବ ପାଶେ ସୁମାର୍ଗେ ଚଳାଇ ।

ବିଳମ୍ବ ନ କର ଆଉ ବିଳମ୍ବ ନ କର,
ବିଳମ୍ବ ହୋଇଲେ କାର୍ଯ୍ୟ ହେବଟି ଦୁଷ୍କର ।

ଏକାକୀ ସହିବାଲାଗି ନାହିଁ ତ କାମନା,
ସେ ଦୁଃଖ ଦେବାକୁ, ସତି, ନ କର ବାସନା ।

ତୁମ୍ଭ ବିନା ଭବ-ଦାବେ ପଡ଼ି ଛଟପଟ
ହେଉଅଛି ହେବ ସିନା ଆହୁର ଝଟପଟ ।

ଲୁଚି ଶଚୀପୁରେ ଯାଇ ରହିଲ ନ କହି,
ପାଶୁଥିଲ ଏହା କେବୁଁ କି ଦୋଷକୁ ବହି ।

ସର୍ବ ଭୋଗାଦରୁ ଦେଉଥିଲ ସମ ଭାଗ,
ଏବେ ସେହି ସୁଖରୁ କି ବଞ୍ଚିତ ଅଭାଗ୍ୟ ।

ଯଦି ପାର ତବ ଭୋଗୁଁ ଦେଇ କିଞ୍ଚିତ
କରିଥା କାମନା ପୂର୍ଣ୍ଣ ଯା ଅଟେ ବାଞ୍ଛିତ ।

ଶେଷ ଦେଖାବେଳେ ତବ ଦିବ୍ୟଦୃଷ୍ଟି ଭାବ
ଦେଖି ଏହି ପାପ ଆଖି କରୁଅଛି ଠାବ ।

ସେ ଭାବ-ନୀରଧି-ନୀରେ ହୋଇ ମୁଁ ପ୍ଳାବିତ
ପୁନଃ ଦେଖା ଲାଗି ହୋଇଅଛି ଆଶାନ୍ୱିତ ।

ଅଜ୍ଞାନ-ଜାଲରେ ହୋଇଥିଲେ ମୁଁ ବେଷ୍ଟିତ
ନ ଭୁଲିବି ନ ଭୁଲିବି ତୁମ୍ଭଙ୍କୁ ନିଶ୍ଚିତ ।

ଭାଗ୍ୟବଶେ ମହାସତୀ କେଉଁ ଦୋଷ ଦେଖି
ନୀରବଭାବରେ ଗଲ ଏ ଦୀନେ ଉପେକ୍ଷି ।

ଧୋଇବ କେ ପ୍ରେମ-ନୀରେ ମୋର ପାପପଙ୍କ,
ନିଶିବ କେ ସୁଖ ଆଉ ଏ ପାପିର ଅଙ୍କ ।

ପୁଣ୍ୟବତୀ ତବ ପୁଣ୍ୟବଳେ ଏ ଭବର—
ଦୁଃଖ ଜାଣୁ ନ ଥିଲି ମୁଁ କିଛିମାତର ।

ଆଜ କିଏ ଶୁଣାଇବ ଦୁଃଖହର ମନ୍ତ୍ର ,
ଛଳବଶେ କି ବଚୁର ହୋଇଛ ସ୍ୱତନ୍ତ୍ର ।

ମାୟାମୋହେ ଦୁଃଖୀ ହେବ ବୋଲି କି ବଚୁର
ରଖିଥିଲ ଗୁପ୍ତଭାବ କିଛି ନ ପ୍ରଚୁର ।

ତୁମ୍ଭ ସତ୍ୟପ୍ରଭା ବଶେ ଏ ଭବ-କାନନେ
ଫୁଟେ ତବ ଅମରତ୍ୱ ପୁଷ୍ପ କି ଯତନେ ।

ସେ ପୁଷ୍ପସୌରଭେ ମୁଗ୍ଧ ହୋଇ ଦେବଗଣ
ଆସି ନେଲେ ସ୍ୱପୁରକୁ କରି ଆମନ୍ତ୍ରଣ ।

ସେହି ଆମନ୍ତ୍ରଣ ରକ୍ଷା କରିବାର ପାଇଁ
ଯାଇ ଆଉ ନ ଆସିଲ ସବୁ ଭୁଲିଯାଇ ।

ସ୍ୱର୍ଗପୁର ଦେଖି ମର୍ତ୍ତ୍ୟେ ମନ କି ବଳିବ,
କହ ସତେ, ସତି, ଆଉ ଫେରି'କି ଆସିବ !

ଢଳିଯାଉଅଛି ଆହା ଆନନ୍ଦ ବଦନ,
ମିଳିଯାଉ ନାହିଁ ଅପଘନେ ଅପଘନ ।

ହେଲେହେଁ ଅଯୋଗ୍ୟ ମୁହିଁ ନ ଧର ତା' ମନେ,
ରହିଲ ଏ ଦୀନହୀନ ଜନେ ପଛପଣେ ।

କି ବିଚିତ୍ର କି ପବିତ୍ର ତୁମ୍ଭର ଚରିତ୍ର,
ସେ ପ୍ରଭାବେ ଅପବିତ୍ର ହୋଇଲା ପବିତ୍ର ।

ଦେବବାଳାଙ୍କର ଶୁଣି ସୁମଧୁର ଗାନ
ମୋର ଶୋକ-ସଙ୍ଗୀତରେ ଡେରିବ କି କାନ ।

ବିଧବସ୍ତୁ ସୁଖପ୍ରଦ ପ୍ରାସାଦର ସୁଖ
ଭୁଞ୍ଜି ପାସୋରିଲ, ସତ, ଏ କୁଟୀର ଦୁଃଖ ।

ନନ୍ଦନକାନନ ପୁଷ୍ପ ଗନ୍ଧେ ତବ ମନ—
ଭୃଙ୍ଗ କି ଭୁଲନ୍ତା ଦେଖି ଏ ପାପ-ସ୍ୱମନ ।

ମନ୍ଦାକିନୀ ସଲିଳରେ ସ୍ନାନ କଲା ପରେ
ତୁହିଁ ଦୃଷ୍ଟି ଦେବ ମାଟି ତଡ଼ାଗ କୂପରେ ।

ନ ଶୁଣିଣ ସଖ ତୁମ୍ଭେ ଦୁନ୍ଦୁଭି ବଦାଉ
ଲୋଡ଼ିବ କାହିଁକି ଭଲ ଢୋଲ ଢାଉଁଢାଉଁ ।

ଦେବମେଳେ କରେ ଯେହୁ ପୀୟୂଷ ଭୋଜନ,
ପାର୍ଥିବ ପଦାର୍ଥେ କିପାଁ ରୁଚିବ ତା' ମନ ।

ନ ଭ୍ରମି କିପାଇଁ ଦିବ୍ୟ ପୁଷ୍ପକ ସ୍ୟନ୍ଦନେ,
ଅପବିତ୍ର ମର୍ତ୍ତ୍ୟଯାନେ ଛୁଇଁବ କେସନେ ।

କ୍ଷମାଗୁଣେ କ୍ଷମା କର ଏ ଛାର ପାମରେ,
ନାନା ଅପରାଧ କରିଅଛି କୁଭ୍ରମରେ ।

ମୁହିଁ ବଡ଼ ଦୋଷୀ ଅଟେ, ଦେବ, ତୁମ୍ଭ ଠାରେ,
ଗଲି ଛାଡ଼ି ଦୋଷୀ ବୋଲି ସିନା ଏ ଧରାରେ ।

ମାୟାମୋହେ ଭୁଲି, ସଖା, ନ ଚହିଁ ତୁମ୍ଭଙ୍କୁ
ମାଟି ପରି କାଟିଅଛି ନିଜ ଜୀବନକୁ ।

ଦେଉଛି ମୁଁ କେତେ ଅଶ୍ରୁ ତୁମ୍ଭର ନୟନେ,
ଅର୍ପିଅଛି ନାନା ବାଧା ଅଭୀଷ୍ଟ ସାଧନେ ।

ଯେହୁଲଗି ସିନା ଏବେ ପାଉଛି ଏ କଷ୍ଟ,
ସତେ କିବା ସେ ପ୍ରତିଜ୍ଞା ହୋଇଯିବ ନଷ୍ଟ ।

ନାହିଁ ନାହିଁ ପୁଣ୍ୟବଳ ମୁହିଁ ମହାପାପୀ,
ଭବ ଭବ ଗତ ସ୍ମୃତି ଦେଉଛି ସନ୍ତାପି ।

ମନ ଦେହେ ଅଳ୍ପ ଦିନେ କର ସୁସାଧନା,
ମର୍ତ୍ତ୍ୟୋଦ୍ୟାନେ ରକ୍ଷିଗଲ-ସତୀତ୍ୱ ବାସନା ।

ସେହୁ ସ୍ନିଗ୍ଧ ପୁଣ୍ୟ ବାସ ଏବେ ପ୍ରଳୟରେ,
ପ୍ରବେଶି ମୋହୁଛି ଜନେ ସକଳ କାଳରେ !

ଜପ ତପୁଁ ସାର ମଣି ପାତିବ୍ରତ୍ୟ ବ୍ରତ,
ଶ୍ରେଷ୍ଠ ମଣି ପାଳୁଥିଲ ହୃଦେ ଅବିରତ ।

ଜାଣିଥିଲ ତୁମ୍ଭେ, ସତି, ପତିସେବା ମୂଲ୍ୟ,
ସବୁ ତୁଚ୍ଛ ମଣୁଥିଲ ମଣିଣ ଅତୁଲ୍ୟ ।

ଦେଇଥିଲ, ସତି, ଯାହା ଗଲ ନେଇ ତାହା,
ମାତ୍ର ଥରେ 'ନ ଦେଖାଇ ତବ ଗମ୍ୟ ରାହା ।

ଗାଇ ଗାଇ ତବଗୁଣ ଏ ପାପ ରସନା,
ହ୍ରାସ କରୁ ମାୟା ମୋହ ବଚ୍ଛେଦ ବେଦନା ।
ମୂର୍ତ୍ତି ଧର ଗୋଟି ଗୋଟି ତୁମ୍ଭ ଗୁଣଶ୍ୟାଣ
ମୁହୁର୍ମୁହୁଃ ହଏ ଦେଖା, ଫାଟିଯାଏ ଛାତି ।
ପାଳୁଥିଲ, ଦେବ, ତୁମ୍ଭେ କେତେ ଓଷାବାର,
ବାହ୍ୟରେ ସସାର ତୁମ୍ଭେ ଅନ୍ତରେ ଉଦାର ।
ତୁମ୍ଭଲାଗି ଧର୍ମ ତୁମ୍ଭେ ସଞ୍ଚୁଥିଲ ନାହିଁ,
ଅର୍ଜୁଥିଲ ତାହା ସେନା ଏ ଅଭାଗାପାଇଁ ।
କରୁଥିଲ ସଦା ତୁମ୍ଭେ ପୁଣ୍ୟେ ଅବଗାହ,
ବହୁଥିଲା ଧମନୀରେ ପୁଣ୍ୟର ପ୍ରବାହ ।
ହୁଏଁ ପଛେ ଅଙ୍କଞ୍ଚନ ଅଧମ ନର୍ମାଣୀ,
ସଘପଛ ଗୌରବ ତା’ ପକାଇବ ଢାଙ୍କି ।
ଯେଉଁ ପୁଣ୍ୟଦେଶେ, ପଣ୍ଡ, ଅଛ ତୁମ୍ଭେ ରହ,
ମର୍ତ୍ତ୍ୟର ଡାକ କ କେବେ ଶୁଣେ ନାହିଁ ତହିଁ ।

ଶୁଭୁଥିବ ଯେବେ ତେବେ ଶୁଣ ଏକ କଥା,
ନିବେଦିବ ପ୍ରଭୁ ପଦେ ମୋର ମର୍ମବ୍ୟଥା ।

ମୋହୋପାଇଁ ଅଳ କଲେ ତୁମ୍ଭେ ପ୍ରିୟତମା,
କରିବେ ସେ ମୋର ସର୍ବ ଅପରାଧ କ୍ଷମା ।

ଯାଇଛ ଗଚ୍ଛିତ ରଖି ମୋ ପାଶେ ଯେ ରତ୍ନ,
ଯୋଗ୍ୟେଟିକି ମୁହିଁ ତାକୁ କରିବାକୁ ଯତ୍ନ ।

ପ୍ରେମଫଳେ ସେହି ରତ୍ନେ ତୁମ୍ଭ ପୁଣ୍ୟମୂର୍ତ୍ତି,
ଭାସି ବୁଲେ ଆହା ତହିଁ ତବ ସୌମ୍ୟ ମୂର୍ତ୍ତି ।

ହେବ ସିନା ସେହି ରତ୍ନ ମୋର ଗଚ୍ଛିଧନ,
ତା' ଦେଖି ଯାପିବି ମୁହିଁ ପଶ୍ଚିମ ଜୀବନ ।

ବିପଦ କଣ୍ଟକମୟ ଉତ୍ତ ଭବ-ବନ,
ଅସୁଲଭ ଏଥି ତୁମ୍ଭ ସମାନ ସୁମନ ।

ମହାପୁଣ୍ୟବତୀ ତୁମ୍ଭେ, ସେ ପୁଣ୍ୟବଳରେ
ହେକଲ ଶଙ୍କର, ଦେବ, ମର୍ତ୍ତ୍ୟ ବୈକୁଣ୍ଠରେ ।

ଏଥି ତଳ କି ସୌଭାଗ୍ୟ ଅଛି ମାନବର,
ଯେଉଁ ଯେବେ ତନୁତ୍ୟାଗ ଇଚ୍ଛନ୍ତି ଅମର ।

ବୋଲନ୍ତି ମଙ୍ଗଳପୂର୍ଣ୍ଣ ବିଧିର ବିଧାନ,
ମାତ୍ର ତାହା ହେଲା ସିନା ମୋହ ଭାଗ୍ୟେ ଆନ ।

ମନ ମଧ୍ୟେ ଥାଏ ଜଳ ଭବ-ମରୁଭୂମେ,
ଥାଏ ସୁଧା ମକରନ୍ଦ ବିଷାକ୍ତ କୁସୁମେ ।

ଆବାଲ୍ୟରୁ ଏ ପ୍ରବାଦ ଶୁଣିଛି ଶୁଣିଛି,
ବୁଝିପାରୁ ନାହିଁ ତାର ସାର୍ଥକତା କିଛି ।

କି ବୁଝିବି, ପ୍ରଭୁ, ତବ ମାୟାର ରହସ୍ୟ,
ତୁମ୍ଭର ମଙ୍ଗଳ ଇଚ୍ଛା ପୂରିବ ଅବଶ୍ୟ ।

ଏ ଜଗତୁ ଅଛି ଯାହା ଭାଗ୍ୟେ ବଞ୍ଚନା ହା,
ରହିଲି ପ୍ରସ୍ତୁତ ହୋଇ ଭୁଞ୍ଜିବାକୁ ତାହା ।

ଭେଠ ହେଲା ଯାଏ, ସତ, କରୁଥିବି ହଠ,
ମାତ୍ର ତେବେ କହୁଛି ତା' ନ ଦେବ କଷ୍ଟ ।

ବିଦାୟ ନେଉଛ ପ୍ରେମ ଆନନ୍ଦ ଚିତ୍ତରେ,
ତବ ଦିବ୍ୟଛବି ପୋଷି ମୋ ଅନ୍ତର୍ଗତରେ ।
ଯାବତ ଉଇଁବେ ନଭେ ଶଶୀ ତାରା ଘନ,
ନୋହିବ ତାବତ ତବ ସ୍ୱଗୁଣ ବିଲୀନ ।
ମାଗୁଣି ଏତିକି ମାତ୍ର, ଦେବମେଳେ ନିତି
କର ଆଶୀର୍ବାଦ ଭେଟ ହେବାକୁ ଝୁରିଛି ।
ଭେଟଯାଏଁ ଗୁନ୍ଥୁଥିବ ଅଶ୍ରୁ ମୁକ୍ତାହାର,
ଲେଖୁଥିବି ଲୋତକରେ ଶୋକ-ଉପହାର ।



ଯାହାଲାଗି ଲାଗିଥିଲା ପରୀକ୍ଷା ଅଶେଷ,
ହାୟ ପ୍ରଭୋ ! ଏବେ ତାହା ଭସ୍ମଅବଶେଷ ।
ନ କନ୍ଦାଅ ଆଉ ନେଙ୍କେ ଭବ ଦୁଃଖବନ,
ସ୍ୱର୍ଗାଗ୍ରରେ ପରିଣତ ହେଉ ସେ ବନ୍ଧନ ।

ସନ୍ତାପିତ ପ୍ରାଣବୃନ୍ଦ କୃପାମ୍ବୁ ଅଭାବେ
ଝାଉଁଳି ଯାଉଛନ୍ତି ଏହି ଭବମୋହଦାବେ ।

ଶରଣରକ୍ଷଣବାନା କେବେ ଚପଳରେ
ଉଡ଼ିବ ମହିମାନଳେ ନୀଳାଦ୍ରିଶିଖରେ ।

ତୁମ୍ଭର ମହିମା ଶୁଣି ଆସିଅଛି ଧାଇଁ,
ନୈରାଶ୍ୟ-ସ୍ରୋତରେ ହରି, ନ ଦିଅ ଭସାଇ ।

ନୁହି ନଷ୍ଟତୃଣ ଅଛି ଏ ଛାର ପାମରେ,
ହୀନମାନ ହେବ ସିନା ବିଭ୍ରମି ଭ୍ରମରେ ।

ଅହା ବୋଲିବାକୁ ପ୍ରଭୁ, କେହି ନାହିଁ ସାହା,
ଭରସା କେବଳ ମୋର ତୁମ୍ଭେ ଚଉବାହା ।

ତୁମ୍ଭେ ମୋ ଭରସା ଆଶା ମୋକ୍ଷର କାରଣ
ବୋଲି ଭକ୍ତେ ନ ଭୁଲନ୍ତି ତବ ଶ୍ରୀଚରଣ ।

ଅତି ବଡ଼ ପାମର ମୁଁ ଅଟଇ ପତିତ,
ପତିତପାବନବାନା କିପାଁ ବା ଘୁଞ୍ଚିବ ।

ଅଜାମିଳ ପୁଣି ଗଜଉଦ୍ଧାର ଚରିତ
ଦେଖିଣ ମୁଁ ଆଶ୍ୱାସନା ଲଭନ୍ତି ଚିତ୍ତ ।

ପୂର୍ଣ୍ଣ ଆଶା କରନ୍ତି ଯେ ତୃଷିତ ଚାତକ,
ନାଶିବ ପିପାସା ପିଇ କରୁଣା-ଉଦକ ।

କ୍ଷମାମୟ, ମାଗେ ତବ ପଦେ କ୍ଷମାଭିକ୍ଷା,
ଦୀନହୀନେ ନ କର ଏ କଠୋର ପରୀକ୍ଷା ।

ଶରଣରକ୍ଷଣ ଅହେ ପତିତପାବନ,
ତୁମ୍ଭ ବିନା କେ କରିବ ପତିତ ପାବନ ।

ସ୍ୱୟମ୍ଭୂ ଈଶ୍ୱର ଗତି ମୁକ୍ତିର ଆଧାର,
ଭବାର୍ଣ୍ଣବ ତରଣରେ ତୁମ୍ଭେ କର୍ଣ୍ଣଧାର ।

ସଂସାର-ସାଗରେ ପଡ଼ି ଭାସୁଛି ଆକୁଳେ,
କରୁଣା-ତରଣୀ ଦେଇ ପହଞ୍ଚାଅ କୂଳେ ।

କରୁଣା-ବରୁଣାଳୟ ଅଗତିର ଗତି,
ନିରାଶ୍ରୟର ଆଶ୍ରୟ ଜଗତର ପତି ।

ପଞ୍ଜର ଏ ମୋର ଜୀର୍ଣ୍ଣ ଶୀର୍ଣ୍ଣ କଳେବରେ
ଦେଇ ନବ ବଳ ଧୈର୍ଯ୍ୟ ଖଟାଅ ପଯୂରେ ।

ଫୁଟୁ ହୃଦ-ବନେ ଭକ୍ତି-ସୁବାସ-ମଲ୍ଲିକା,
ସାଧୁଗଣେ ଅନୁକ୍ଷଣେ ହେଉ କ୍ଷଣା ବଙ୍କା ।

ନିୟତ ନିୟମ ଅଛି ନିଜ ଅଧିକାର
ତୁମ୍ଭେ ଥାଉଁ ଥାଉଁ କିପାଁ କରିବ ବିସ୍ତାର ।

କିପାଁ ଭଲ ଥାଉଁ ଥାଉଁ ତୁମ୍ଭ ସମ ପିତା,
ହୃଦୟ-କାନନେ ଘଟେ ଦହେ ଚିନ୍ତା-ଚିତା ।

ହେଲଣି ମୁଁ ଅବସନ୍ନ ଭୁଲି ଆତ୍ମଜ୍ଞାନ,
ଆଉ ନ ଭୁଲାଇ ପ୍ରଭୁ ଦିଅ ଶୁଭ ଜ୍ଞାନ ।

ସମ୍ପୂର୍ଣ୍ଣ



